ଏ କଥା ପ୍ରଥମେ ସ୍ପଷ୍ଟ କରି ଦିଏ କି ଏଠାରେ ସମସ୍ତ ବାର୍ଣ୍ଣିକ ଗାୟତ୍ରୀ ଓ ବାର୍ଣ୍ଣିକ ଉଷ୍ଣିକ୍ ଛନ୍ଦର ହିଁ ଉଦାହରଣ ଦିଆ ଯାଇଛି । ବାର୍ଣ୍ଣିକ ଓ ମାତ୍ରିକ - ଏ ଉଭୟ ପ୍ରକାର ଛନ୍ଦ ଲୌକିକ ଶ୍ରେଣୀର ଅନ୍ତର୍ଗତ । ଏହାକୁ ବେଦିକ ଗାୟତ୍ରୀ ବା ବୈଦିକ ଇଷ୍ଣିକ୍ ଛନ୍ଦ ବୋଲି ପାଠକଙ୍କ ମନରେ ଭ୍ରମ ନ ହେଉ ।

ଜ୍ଞାତବ୍ୟ ଯେ ବୈଦିକ ଛନ୍ଦ ଗୁଡିକ ବେଦ ବାହାରେ କୁତ୍ରାପି ଲେଖା ଯାଇ ଥିବାର ଦୃଷ୍ଟାନ୍ତ ଆମ ଇତିହାସରେ ନାହିଁ । ଏ ପରି କି ଆଦିକବି ବାଲ୍ମୀକିଙ୍କ ରାମାୟଣରେ ମଧ୍ୟ ଲୌକିକ ଛନ୍ଦଗୁଡିକ ହିଁ ପ୍ରଯୁକ୍ତ । ସେ ଆଦିକବିଙ୍କଠୁ ଏ ଯାଏ ଭାରତର କବିଗଣ ବୈଦିକ ଛନ୍ଦରେ କିଛି ଲେଖି ନାହାନ୍ତି । ତେଣୁ ଛନ୍ଦ ଲିଖନର ଶିକ୍ଷାର୍ଥୀଙ୍କ ପାଇଁ ବୈଦିକ ଛନ୍ଦର ଚର୍ଚ୍ଚା ଏଠାରେ କରୁ ନାହିଁ

ତେଣୁ ଏଠାରେ ପ୍ରତିଷ୍ଠା ସୁପ୍ରତିଷ୍ଠା ଗାୟତ୍ରୀ ଓଉଷ୍ଣିକ୍ ଛନ୍ଦ ସମସ୍ତର କେବଳ ଲଘୁ ଓ ଗୁରୁ ବର୍ଣ୍ଣ ପ୍ରୟୋଗ ହିଁ ଉଦାହରଣହର ଯୋଗେ ଦର୍ଶେଇ ଦେଇଛି ।

ଇତି । ଲଲାଟେନ୍ଦୁ କବି ।

# ପ୍ରତିଷ୍ଠାସୁପ୍ରତିଷ୍ଠାଗାୟତ୍ରୀଉଷ୍ଣିଗ୍‌ଛନ୍ଦସାଂ ଉଦାହରଣାନି

## ପ୍ରତିଷ୍ଠା ଛନ୍ଦାଂସି

====================
**111-1** ଛନ୍ଦ: ହରି
ନ କର ତୁ ଅହରହ ମିଛ ଗପ ଶହ ଶହ । 1
ମୁଖ ଧୁଅ ବହି ଧର ଉଠୁଅଛି ଦିନକର । 2
====================
**111-2** ଛନ୍ଦ: ସତୀ
ସରୁ ଥରେ ବହି ପଢା ଜଳଖିଆ ହବ ବଢା ।3
ସରି ଗଲେ ସବୁ ଖିଆ ଶଗଡଟା ହବ ଠିଆ ।4
====================
**112-1** ଛନ୍ଦ: ପୁଞ୍ଜ
ନ କଲେ ତୁ ବହି ପାଠ ଦିବି ଦେବ କଷି ଛାଟ । 05
ମନ ଦେଇ ପଢି ଚାଲ ପିଠିରେ ନ ପଡୁ ତାଳ । 6
====================
**112-2** ଛନ୍ଦ: ଦେବୀ
ଛୁଟି ହେଲେ କର ଖେଳା ରବିବାରେ ଦୁଇବେଳା । 07
ପଢିବାରେ କିଛି ହେଳା ଯଦି ହେଲା ଯିବ ଭେଳା।08
====================
**121-1** ଛନ୍ଦ: ଧର (ନାମାନ୍ତର: ହରା)
କଥା ଯଦି ନ ମାନିବ ମିଠା ଫଳ କି ଆସିବ । 09
ଦିନେ ବଡ ତୁମେ ହବ ପଢା ଫଳ ନିଜେ ନବ । 10
====================
**121-2** ଛନ୍ଦ: ସୁଧୀ
ସୁନା ପିଲା ହୁଏ ଯିଏ ପଢା ସଦା କରେ ଯିଏ ।11
ନ ଆସିଲେ ପଚାରିକା ବୁଝେ କରେ ମନେରଖା ।12
====================
**122-1** ଛନ୍ଦ: ଉଷା
ଛୁଆବେଳୁ ଜଣେ କେହି ପଢା ଛାଡି ଭଲେ ନାହିଁ ।13
ସଦା ତେଣୁ ମନେ ଥାଉ ବିନା ପାଠ ସୁନା ନୋହୁ ।14
====================
**122-2** ଛନ୍ଦ: କ୍ରୀଡା
ପଢା ମଧ୍ୟେ କ୍ଷଣେ ହେଲେ ନ ଧାଏଁ ସେ ଜମା ଖେଳେ ।15
ସିଏ ନିଶ୍ଚେ ଧରା ଧାମେ ଗଣା ଯାଏ ସସମ୍ମାନେ ।16
====================
**211-1** ଛନ୍ଦ: ନିଶି
ଯେଉଁ ଦିନ ହେବୁ ବଡ ଦେଖିବୁ ତୁ ଘୂର୍ଣ୍ଣି ଝଡ । 17
ଜୀବନର ଯେ କଷଣ ପାଠ ଥିବ ସାଥିଜନ । 18
====================
**211-2** ଛନ୍ଦ: କଳା
ଗାଳି କରେ ତୋ ହିତରେ ଯା ମୁ କହେ ତୋ ହିତରେ ।19
ତୋ ସୁଖରେ ଭାରି ସୁଖେ ନେବି ସତେ ଜାକି ବୁକେ ।20
====================

**212-1** ଛନ୍ଦ: ଧାରୀ

ଏହି ବିଶ୍ୱ କର୍ମ ଭୂଇଁ କର୍ମଠାରୁ ଧର୍ମ ନାହିଁ । 21
କର୍ମ ଲାଗି ପାଠ ମାତ୍ର, ତେଣୁ ହେବୁ ଯୋଗ୍ୟଛାତ୍ର ।22

====================

**212-2** ଛନ୍ଦ: ରଙ୍ଗୀ

ପୁତ୍ର କେବେ ସାଙ୍ଗ ମେଳେ ଖେଳ ନା ରେ ପାଠବେଳେ ।23
ଖେଳ ଯେତେ ପାଠ ଶେଷେ ଖ୍ୟାତନାମା ହେବ ଦେଶେ ।24

====================

**221-1** ଛନ୍ଦ: କୃଷ୍ଣା

ଯେବେ ଯିବ ବିଦ୍ୟାଳୟ ପାଠେ ରଖ ବାପା ଲୟ ।25
ଖାତା ଧରି ଲେଖା କରବାଗେଇକି ହସ୍ତାକ୍ଷର । 26

====================

**221-2** ଛନ୍ଦ: ଧୂର

କେବେ ବି ତୋ ବିଦ୍ୟାଳୟେ ଯା ନା ତୁହି କାହାଭୟେ ।27
ଶ୍ରଦ୍ଧା ବଶେ ପାଠେ ଥିଲେ ବିଦ୍ୟା ହୁଏ ନିଷ୍ଠେ ଭଲେ ।28

====================

**222-1** ଛନ୍ଦ: ଧାର

ଭୂଗୋଳେ ବି ସାହିତ୍ୟେ ବି ଐତିହ୍ୟେ ବି ସଦ୍ଛନ୍ଦେ ବି ।29
ହୀନା ନାହିଁ ବିଦ୍ୟା କେହି ବିଦ୍ୟା ଘେନ ନାଷ୍ଠା ଦେଇ ।30

====================

**222-2** ଛନ୍ଦ: କନ୍ୟା

ଯାଏ ନା ଯେ କେବେ ଚୌର୍ଯ୍ୟେ ଭାଜେନାତା ନାନାକାର୍ଯ୍ୟେ।31
ସେହି ଶ୍ରେଷ୍ଠା ସେ ଶ୍ରୀ ବିଦ୍ୟା କାଳେକାଳେ ଯାହା ବନ୍ଦ୍ୟା ।32

====================

ଇତି ଶ୍ରୀ ଶ୍ରୀ ବାଣୀପୁତ୍ରେନ ଉଦାହୃତଂ ଦିବ୍ୟପ୍ରତିଷ୍ଠା ଶ୍ରେଣୀଭୁକ୍ତଂ ଛନ୍ଦଷୋଡଶକଂ ସମାପ୍ତମ୍

*ବାଣୀପୁତ୍ର 202302131313*

.

## ସୁପ୍ରତିଷ୍ଠା ଛନ୍ଦାଂସି

====================

**111••11** ଛନ୍ଦ: ଯମ (ହଳି)

ସରିତ ଜଳ ଅଥଳ ତଳ
ନ ଛୁଅଁ ଶିଶୁ ଘରକୁ ଚଳ । 01

====================

**111-12** ଛନ୍ଦ: କରତା (ସୁଲୂ)

ଭସିତ ତଳେ ଅନଳ ଜଳେ
ରକତ ଝରା ତପତ ଖରା । 02

111-21 ଛନ୍ଦ: ପାଂଶୁ

ବହୁତ ପାଠ ପଢ଼ ତୁ ଚାଟ
ଅଳପ ପାଠ ରଜକ ଘାଟ । 03
====================
111-22 ଛନ୍ଦ: କଳଳି

ମରଣ କାଳେ ମରମ ଜାଳେ
ଖଳର ମାଥେ କପଟ ଚାଲେ । 04
====================
112-11 ଛନ୍ଦ: ନାୟକ (ଜନ୍ତୁ)

ଅତି ଆଦର କଲି ମାତର
ଅବୁଝା ନର ରହିଲା ପର । 05
====================
112-12 ଛନ୍ଦ: ରତି (ପ୍ରିୟା)

ସରମୀ ଲତା କହିଲା କଥା
ରହିଲା ଅଧା ଶୁଭ ବାରତା ।
ମିଳିଲେ ଥରେ ଗିରିକନ୍ଦରେ
ଅତି ଆଦରେ ଯିବି ତା ଘରେ ।06
====================
112-21 ଛନ୍ଦ: ପାଳି

ରଜନୀ ବାସି ସଦନେ ଆସି
କହିଲା କିଏ ମଧୁ ସମ୍ଭାଷି ।
ଅଧୁରା ପ୍ରେମ ରହିଲା ମୋର
କହ ଏ ପାଖ ବଗିଚା ତୋର ।
ବଗିଚାରେ ତୁ କଳିକା ଏକ
ତୁହି ମୋ ପ୍ରେମ- କବିତା ଟେକ । 07
====================
112-22 ଛନ୍ଦ: ପ୍ରଗୁଣ

ରଜନୀ ନାଶେ ସହସା ଆସେ
ସହସା ଯାଏ ଅଜଣା ବାସେ । 08
କଳସୀ କାଖେ ଅଳସୀ କନ୍ୟା
ମୁଖ ତା ଚାଖେ ସରସୀ ଧନ୍ୟା । 08
====================
121-11 ଛନ୍ଦ: କ୍ଷୁପ

ହୁତାଶ ପର ବତାସ ଖର
ଅଧୀର ଅତି ନଦୀର ଝର । 09
====================

କବିତା ବିଶାଳ ସିନ୍ଧୁ ଅଧୀର ପୋତ

====================

**121-12** ଛନ୍ଦ: ଶିଳା

*ପଦାର ଚଳେ* *ଅଜାତ ଜଳେ*

*ସଦା ଚହଲେ* *ବତାସ ବଳେ / 10*

ପଦାର= ନୌକା;

====================

**121-21** ଛନ୍ଦ: ବାର୍ଦ୍ଧି

*ଅଗାଧ ମୀର* *ବତାସ ଧୀର*

*ଅଜାତ ନୀର* *ହତାଶ ବୀର /11*

ମୀର= ସମୁଦ୍ର; ଧୀର= ସବଳ;

====================

**121-22** ଛନ୍ଦ: ଯଶୋଦା (କଣ୍ଠୀ)

*ଅଦମ୍ୟ ରାତ୍ରୀ,* *ଉଦାତ୍ତ ଗୀତେ*

*ଅବଶ୍ୟ ଯାତ୍ରୀ* *ଉଦାସ ଚିତ୍ତେ / 12*

ଅବଶ୍ୟ= ଅନିୟନ୍ତ୍ରିତ;

**Lalatendu Kabi**

====================

I

**122-11** ଛନ୍ଦ: ବରୀୟ

*କିଏ ଆସିଲ* *ନିଦେ ଭାଷିଲ*

*ଉଦାସେ ମନ* *କୁଆଡେ ଗଲ / 13*

====================

**122-12** ଛନ୍ଦ: ନରୀ

ଅକସ୍ମାତ୍ କଥା କଲେ ସେ ବ୍ୟଥା

ଦିଏ କା ହୃଦେ ଅନିଚ୍ଛାକୃତା । 14

====================

**122-21** ଛନ୍ଦ: ଭୂ

ଅନଙ୍ଗେ ମେଘ ଧରନ୍ତେ ବେଗ

ତଡାଗେ ସ୍ୱାଙ୍ଗ ବଢାଏ ବେଙ୍ଗ । 15

====================

**122-22** ଛନ୍ଦ: ନାଳୀ

କି ଯାଏ ଆସେ କିଏ ତା ପାଶେ

ତମୋମ୍ବୁ ତ୍ରାସେ ରହନ୍ତା ମାସେ । 16

====================

**211-11** ଛନ୍ଦ: କ୍ଷୁତ୍

ଆସର ସରୁ ଆସିବୁ ଘରୁ

ମାଟି କୁଦରୁ କାଟିବୁ ତରୁ । 17

**211-12** ଛନ୍ଦ: ମଣ୍ଡଳ

ଆବର ନିଶା ଗ୍ରାସିବ ଦିଶା
ହେବ ବିଦିଶା ଆସ୍ରବ ମିଶା । 18

====================

**211-21** ଛନ୍ଦ: ବିଡ୍

ନିର୍ଦ୍ଧନ କୋଟି- ଭିକ୍ଷୁର ଦେଶ
ଭୂପର ଭବ୍ୟ କର୍ବୁର ବେଶ । 19

====================

**211-22** ଛନ୍ଦ: ପଙ୍କ୍ତି (ଅକ୍ଷରପଙ୍କ୍ତି, ହଂସ)

ଅର୍ବୁଦ ଦେଶେ ମନ୍ଦିର ପାଶେ
ଭିକ୍ଷୁକ ବେଶେ ପେଟ ସକାଶେ । 20

====================

**212-11** ଛନ୍ଦ: କଳ୍କି

ଏକି ଦୁଃସହ ବାରତା କହ
କେହି ତାଙ୍କର ପାଖରେ ରହ । 21

====================

**212-12** ଛନ୍ଦ: ବୈନସ

ପୁଷ୍ପ ମଞ୍ଜରୀ ଚୁମ୍ବି ଚଞ୍ଚରୀ
ଲଙ୍ଘିଲା ଖରା ବର୍ଣ୍ଣ୍ୟ ନିର୍ଝରୀ । 22

====================

**212-21** ଛନ୍ଦ: ହ୍ରୀ

ପୂର୍ବରେ ଚନ୍ଦ୍ର ପଶ୍ଚିମେ ସୂର୍ଯ୍ୟ
ବାଜିଲା ମନ୍ଦ୍ର କମ୍ପନେ ତୂର୍ଯ୍ୟ । 23

====================

**212-22** ଛନ୍ଦ: ସୁରଣୀ

ପଲ୍ଲିକାବାଳା ମଲ୍ଲିକାମାଳା
ପିନ୍ଧି ଦେଖେ ତା ଗଲ୍ଲକେ ଜ୍ୱାଳା । 24

====================

**221-11** ଛନ୍ଦ: ଛିଦ୍ର

ଏ ଦେଶ ନର ଚିନ୍ତା ନ କର
ଏ ପ୍ରେମ ଝର ହେବ ପ୍ରଖର ।25

====================

**221-12** ଛନ୍ଦ: କର୍ଣ୍ଣିକା

ସମ୍ପୂର୍ଣ୍ଣ ରସା ଏ ମନ୍ତ ଦଶା
ଭୋଗେ ବିକଳେ ଏ ଲୋକହସା । 26

====================

221-21 ଛନ୍ଦ: କିଞ୍ଜଳ୍କୀ

ରାଜାର ଶସ୍ତ୍ର ଏକ୍ୟ ପ୍ରଜାଙ୍କ
ଲୋକେ ବିଭେଦ ରାଜ୍ୟେ କଳଙ୍କ । 27
====================
221-22 ଛନ୍ଦ: ହାରୀ (ଲୋଳ, ସହା)

ଯେ ଭୂପ ତୋଷେ ଲୋକଙ୍କୁ ହର୍ଷେ
ଲୋକେ ହିଁ ଖଣ୍ଡା ରାଜାର ହସ୍ତେ । 28
====================
222-11 ଛନ୍ଦ: ମାଳୀନ
ଜିହ୍ୱାରେ ମଧୁ ସ୍ୱାନ୍ତେ ସଙ୍ଗର
ବର୍ଜ୍ୟାତ୍ମା ମିତ ନିଶ୍ଚେ ସତ୍ୱର । 29
====================
222-12 ଛନ୍ଦ: ହାସିକା

ଆଗାମୀ ଦିନେ ହେମନ୍ତେ ଥରେ
ତୀର୍ଥାର୍ଥେ ଯିବା ସ୍ନାନେ ପୁଷ୍କରେ । 30
====================
222-21 ଛନ୍ଦ: କୁମ୍ଭାରି

ଏ ଯଜ୍ଞେ ବୃଷ୍ଟି ସେ ଯଜ୍ଞେ କୃଷ୍ଟି
ଜନ୍ମାଏ ଦୃଷ୍ଟି ଯଜ୍ଞେ ସଂସୃଷ୍ଟି । 31
====================
222-22 ଛନ୍ଦ: ସମ୍ମୋହା
(ସମ୍ମୋହାସିର, ବିଳା)
ବିଶ୍ୱାତ୍ମା ଦେଖେ ସାରା ଏ ବିଶ୍ୱେ
କେମନ୍ତେ ଦୈନ୍ୟେ ହୀନତ୍ୱେ ନିଃସ୍ୱେ । 32
====================
*ବାଣୀପୁତ୍ରକୃତାନି* _ସୁପ୍ରତିଷ୍ଠା_ ଛନ୍ଦସଃ
ଉଦାହହରଣାନି 202302170909

## ଗାୟତ୍ରୀ ଛନ୍ଦାଂସି

====================
ଛନ୍ଦ: ଉପବଳୀ 06/64 111/111

ରହ ତୁ କୁମର ଉଚ୍ଛୁର ନ କର
ଦିଶିବ ସୁତର ଯତନରୁ ଘର ।
====================

ଛନ୍ଦ: ସରି 06/32 111/112

ମଧୁର ବଚନେ ମୃଦୁଳ ପବନେ
ବିତୁ ସୁରଜନୀ ଫୁଲ ଉପବନେ ।

====================
ଛନ୍ଦ: ପୁଟମାର୍ଦ୍ଧି 06/48 111/121

ଉଧ୍ୱରଥ ପୁତ୍ର ଉପଗତ ମିତ୍ର
ରଚିଅଛି ସକ୍ତ ପ୍ରିୟଜନ ଚିତ୍ର ।

====================
ଛନ୍ଦ: ଶଶିବଦନା 06/16 111/122
(ନାମାନ୍ତର: ତତୁରଂସା, ଚଣ୍ଡରସା, ଚତୁର୍ବର୍ଣ୍ଣା)

ସୁରଭିତ ପୁଷ୍ପେ ମତି ଅନୁରୂପେ
ଭଜିବି ମୁଁ ଚିତ୍ତେ ପ୍ରମିତକ ବିତ୍ତେ ।

परममुदारं विपिनविहारम् ।
भज प्रतिपालं व्रजपतिबालम् ॥

====================
ଛନ୍ଦ: ଅୟମିତ 06/56 111/211

ପ୍ରଭୁ ଦୟାମୟ ଦିଅ ବରାଭୟ
କରଣ ଆଶୟ ରହୁ ଅନାମୟ ।

====================
ଛନ୍ଦ: ନିରସିକା 06/24 111/212

ଶର ପରେ ମଥା ତନୁ ଥିଲା ତଥା
ମରଣ ଦର୍ଶନେ କୁରୁବରେ ବ୍ୟଥା ।

====================
ଛନ୍ଦ: ଅନିଭୃତ 06/40 111/221

ଗହନ କାନ୍ତାର ପବନ ସଞ୍ଚାର
ହରି ନିଏ ଚିତ୍ତ ହୃଦୟ କାସାର ।

====================
ଛନ୍ଦ: ଗୁଣବତୀ 06/8 111/222

ଅଖିଳ ଏ ଦେଶେ ମଣ୍ଡନ ସନ୍ଦେଶେ
କରୁଛି କେ ହିଂସା ଗୁପତ ନିର୍ଦ୍ଦେଶେ ।

====================
ଛନ୍ଦ: ବିସସୀ 06/60 112/111

ଉଡିଲା ପଥର ବୁଡିଲା ପତର
ଖସିଲା ଅଚଳୁ ମୁକୁତା ନିକର ।

====================

ଛନ୍ଦ: ତିଳକା 06/28 112/112

ଅଜଣା ପୁଲକେ ଅଶୁଣା ସ୍ତବନେ
ହସିଲା ବସୁଧା ସହସା ସ୍ୱପନେ ।

====================

ଛନ୍ଦ: ମଧୁମାରକ 06/44 112/121

ଯମୁନାର ତୀର ଅଫୁଟା କଦମ୍ବ
ଦିଶିଲା ପ୍ରିୟତ୍ୱ ମରିବାର ବିମ୍ବ ।

====================

ଛନ୍ଦ: କମନୀ 06/12 112/122

ରଣବୈଜୟନ୍ତୀ

ନ ଥିଲା ଜିଗୀଷା ନ ଥିଲା ଜିଘାଂସା
କୁରୁବୃଦ୍ଧ ନେତ୍ରେ ଶରବିଦ୍ଧଭାଷା ।1

ନିଜ ନେତ୍ର ଆଗେ ଅସୁ ଶେଷ କାଳେ (ଅସୁ= ଆୟୁ)
କୁଳନାଶଦୃଶ୍ୟେ ଅବସନ୍ନ ଭାଳେ ।2

କୁଳବୃଦ୍ଧ ଭାଳେ କି ଥିଲା କି ହେଲା
ମର୍ମଭେଦି ଯାଏ ଅପସାର ବେଳା ।3 (ଅପସାର= ବିଦା)

କି ଥିଲା ବିଘାତେ ଫଳିବାର ଆଶା (ବିଘାତ= ଯୁଦ୍ଧ)
ନରରକ୍ତପାତେ ଭୁବନେ କି ଶଂସା ।4 (ଶଂସା=ପ୍ରଶଂସା)

ଝରି ରକ୍ତଗଙ୍ଗା ଭିଜିଲା ଧରିତ୍ରୀ
ଫଳ ନେତ୍ର ଅଗ୍ରେ ଘନ ଘୋର ରାତ୍ରୀ । 5

ବସୁଧାର ଅଙ୍ଗେ ନ ଦିଶନ୍ତି ବୀରେ
ଅଛି ମାତ୍ର ପୃଥ୍ୱୀ ଭିଜି ନେତ୍ରନୀରେ ।6

ବିଧବା ଅନାଥ ହତଭାଗ୍ୟକନ୍ୟା
ବିକଳେ ଝରାନ୍ତି ନିତି ନେତ୍ରବନ୍ୟା । 7

ବଳବୀର୍ଯ୍ୟ ଧିକ୍‌ଧିକ୍ ଅତି ହେୟ ଶୌର୍ଯ୍ୟ
ରଣଭୂମି ଧିକ୍‌ଧିକ୍ ବରଣୀୟ ଧୈର୍ଯ୍ୟ ।8

ଭୁଲି ଯୋଦ୍ଧୃ ଧର୍ମେ ରଣବୈଜୟନ୍ତୀ
କରଣୀୟ ହିଂସା- ଦ୍ୱିଷତା-ସମାପ୍ତି । 9

**Lalatendu Kabi**

====================

====================
**ଛନ୍ଦ: ଶଙ୍ଖଦ୍ୟୁତି 06/52 112/211**

ମଉଳା ଏଫୁଲ ଅଛି କେ ତା ତୁଳ
ଝଡି ପୃଥ୍ୱୀତଳ ଅତି ସେ ଉଜ୍ଜ୍ୱଳ ।
====================
**ଛନ୍ଦ: ମୃଦୁକୀଳ 06/20 112/212**

ମହୁଆ ଏ ବନେ ମଦିରା ସେବନେ
ନ ସରେ କାମନା ଅଧୁରା ଜୀବନେ ।
====================
**ଛନ୍ଦ: ଢୁଣ୍ଢି 06/36 112/221**

ଭବ ପାରାବାର ଲୁହ ବର୍ଷା ଧାର
ଧରି ହେଲା ପୂର୍ଣ୍ଣ କହିଲା ସସ୍ତାର ।
====================
**ଛନ୍ଦ: ଅବିଖ୍ୟା 06/4 112/222**

ତବ ଗୀତେ ବନ୍ୟା ଲଭି ପୃଥ୍ୱୀ ଧନ୍ୟା
ଛୁଟୁ ରମ୍ୟା ଗାଥା ନିରତେ ଆରଣ୍ୟା ।
====================
**ଛନ୍ଦ: ସୁଦାୟୀ 06/62 121/111**

ତୁମେ ପ୍ରିୟବର ଫୁଲେ ହିତକର
ବିଗନ୍ଧ ଫୁଲର ତୁମେ ମଧୁକର ।
====================
**ଛନ୍ଦ: ଅପରଭା (କୁହୀ) 06/30 121/112**
**ଅପରଭା (କୁହୀ)**

ନିରନ୍ଧ୍ର ତିମିରେ ତୁମେ ରବିଶଶୀ
ବିପତ୍ର ସଦନେ ତୁମେ ହିଁ ତୁଳସୀ **121/112**
====================
**ଛନ୍ଦ: ମାଳତୀ 06/46 121/121**
**(ସୁମାଲତିକା) (ମାଳତିକା -vv)**

ତୁମେ ଶୁଭବୁଦ୍ଧି ତୁମେ ମନଶୁଦ୍ଧି
ତୁମେ ଅଭିବୃଦ୍ଧି ତୁମେ ହିଁ ସମୃଦ୍ଧି ।
====================
**ଛନ୍ଦ: ଅରଜସ୍କ 06/14 121/122**

ତୁମେ ହିଁ ପରୀକ୍ଷା ତୁମେ ହିଁ ତ ଶିକ୍ଷା
ତୁମେ ହିଁ ଦୀକ୍ଷା ତୁମେ ହିଁ ତିତିକ୍ଷା ।
====================

ଛନ୍ଦ:  ସାବଟୁ  06/54  121/211

ତୁମେ ସିନା କହ  ପ୍ରବୃତ୍ତି ଦୁଃସହ
ସଭିଙ୍କ ଜୀବନ  ଦୁରୁହ ନିଶ୍ଚୟ ।
====================
ଛନ୍ଦ:  ବଳୀମୁଖୀ 06/22  121/212

କିଏ ଥରେ ଥରେ  ସୁପର୍ଣ୍ଣ ଡାକରେ
କହେ ଯିବା ଥରେ  ସରୋଜ ପୁଷ୍କରେ ।
====================
ଛନ୍ଦ:  କ୍ଷମାପାଳି 06/38  121/221

ଦିନେ ବଡ କ୍ରାନ୍ତି  ଦିନେ ତହିଁ ଭ୍ରାନ୍ତି
ଦିନେ ପରିଶ୍ରାନ୍ତ  ସମଜରେ ଶାନ୍ତି ।
====================
ଛନ୍ଦ:  କଞ୍ଜା  06/6  121/222

ଦିନେ ନିଶା ଅନ୍ତେ  ଦିଶା ପରପ୍ରାନ୍ତେ
କିଏ ଦିଶା ପ୍ରଷ୍ଠେ  ନିରେଖିଲା ମୋତେ ।
====================
ଛନ୍ଦ:  ଅର୍ତି  06/58  122/111

ସକାଳେ ତୁହିନ  ଦିବାର୍ଦ୍ଧେ କୁଦିନ
ସରେ ନା କଷଣ  ଇଏ କା ଗ୍ରହଣ ।
====================
ଛନ୍ଦ:  ମଶଗା  06/26  122/112

କିଏ ସେ କହିଲା  ବିନିନ୍ଦା ଦହିଲା
କି ହେବାର କଥା  କିଏ ଜାଣିଥିଲା ।
====================
ଛନ୍ଦ:  ବୃତ୍ତହାରୀ 06/42  122/121

ଜାଣା ନାହିଁ ଯାର  ମନେ ଯା ବିଚାର
କିଭାବେ ମୁଁ ଭାର  କରେ ଦେବି ତାର ।
====================
ଛନ୍ଦ:  ଶଙ୍ଖନାଦୀ 06/10  122/122
(ସୋମରାଜି) (ଶଙ୍ଖଧାରୀ-vv)

ତବ ପ୍ରେମଧାରା  କଲା ଯେ ଇସାରା
କିଏ ବା କରନ୍ତା  ସ୍ୱଭାବେ କିନାରା ।
====================

ଛନ୍ଦ: ସୋମଶ୍ରୁତି06/50 122/211

ସ୍ୱନାମେ କେହି ତ | କରେ ନା ଲେପିତ
ବିଗର୍ହା ପର୍ବତ | ନୁହେଁ ଯା ବାଞ୍ଛିତ ।
====================
ଛନ୍ଦ: କଚ୍ଛପୀ 06/18 122/212

ତବପ୍ରେମେ ମୁଁ ଗୋ | ନ ଯାଏ ମନ୍ଥୁରା
ସଜାଗେ ଶର୍ବରେ | ରହେ ତନ୍ଦ୍ରାତୁରା ।
====================
ଛନ୍ଦ: ବିନ୍ଦୁ 06/34 122/221

ଅମାବାସ୍ୟା ରାତି | ପ୍ରସିକ୍ତା ପାହାନ୍ତି
କିଏ ପୁଛେ ଆସି | କିଆଁ ସେ ନାହାନ୍ତି ।
====================
ଛନ୍ଦ: ପଙ୍କ୍ତାଖ୍ୟ 06/2 122/222

କିଏ କାନେ କାନେ | କହେ ଏକଧ୍ୟାନେ
ନ ଯା ଅତ୍ୟାଦାନେ | ଅସିଦ୍ଧ ପ୍ରଜ୍ଞାନେ ।
====================
ଛନ୍ଦ: ଅନତି 06/63 211/111

ଆଜିଟି ନିଜର | କାଲି ପର ଘର
ପାଇକି ନିବର | ସାଥି ସହଚର ।
====================
ଛନ୍ଦ: ସୌରଭି 06/31 211/112

ଆସିବ ସକଳେ | ଆମ୍ରତରୁ ତଳେ
ଚାଖିବ ଖସିଲେ | ସ୍ୱାଦଯୁତ ଫଳେ ।
====================
ଛନ୍ଦ: ପାକଳି 06/47 211/121

ଦେଖିବ ତୁମେ ତ | ଆମ ଘର ଖେତ
ଦେଖି ଭଲ ଛାତ | ବାନ୍ଧି ଦବ ନେତ ।
====================
ଛନ୍ଦ: ଈତି 06/15 211/122

ଆସିବ କି ପାଶେ | ଏ ଖର ବତାସେ
ଗ୍ରୀଷ୍ମ ଅବକାଶେ | ଫେରି ନିଜ ବାସେ ।
====================
ଛନ୍ଦ: ନନ୍ଦୀ 06/55 211/211

ଦେଶର ଚାଉଳ | ଖାଇ ପକା ସବୁ
ଭାସି ଗଲେ ଜନ | ମୋଟୁ ତୁଟା ହବୁ ।

---

।

ଛନ୍ଦ: ଶୁନକ 06/23 211/212

ରାଜକରେ ଖୁଆ ତୋର ପିଲାଛୁଆ
ବିତ୍ତ ବୁଡାକୁ ସେ ବନ୍ଧୁ କି କାଢୁଆ ।

====================

ଛନ୍ଦ: ରାଢି 06/39 211/221

ପୁତ୍ର ଗଲେ ନାଶ ଅନ୍ଧବୁଢା ବଂଶ
ହେଇ ଗଲା ଶେଷ ଦେଖୁଥିଲା ଦେଶ ।

====================

ଛନ୍ଦ: ଅମ୍ବା 06/7 211/222
(ସିନ୍ଧୁରୟା -vv)

ଜାତି କିବା ଗୋଷ୍ଠୀ କେହି ନୁହେଁ ଦାୟୀ
ବେଶି ଅହଂକାରେ ଯୁଦ୍ଧ ହୁଏ ସ୍ଥାୟୀ ।

====================

ଛନ୍ଦ: ପ୍ରମରି 06/59 212/111

ତ୍ୟାଗପୁଣ୍ୟମତି ପାଇ ବୀରଗତି
ଭୀଷ୍ମ ତା ଜନନି ଜାହ୍ନବୀର କତି ।

====================

ଛନ୍ଦ: କର୍ମଦା 06/27 212/112

ଆସ ଆସ ବନ୍ଧୁ ଯାଇ ଘୋର ସିନ୍ଧୁ
ତାର ଗର୍ଭ ମଧ୍ୟୁ ଆଣ ମୋତି ବିନ୍ଦୁ ।

====================

ଛନ୍ଦ: ଆର୍ଭବଂ 06/43 212/121

ବର୍ଷିଲେ ମୟୂର ଯୁଦ୍ଧ ଦେଖି ଶୂର
ଚିତ୍ତରେ ବିଚାର - ଯୋଗ ନାଚିବାର ।

====================

ଛନ୍ଦ: ପିକାଳୀ 06/11 212/122

ବାଜୁ ଏହି ବଂଶୀ ଆସ ପୁଣ୍ୟଶଂସୀ
ଆସ ଏହି ଦେଶେ କେହି ପାରଦର୍ଶୀ ।

====================

ଛନ୍ଦ: ସୋପଧି 06/51 212/211

କେଶବେ ଭାରତ ଭାଷିଲା ତା ମତ
ଯୁଦ୍ଧରେ କେବଳ ମୃତ୍ୟୁ ଆଉ କ୍ଷତ ।

====================

ଛନ୍ଦ: ବିମୋହା 06/19 212/212
(ବଲ୍ଲରୀ) (ବିଜୋହା -vv)

କାନନେ ମାଳତୀ ଭୂତଳେ ଅଞ୍ଜତୀ
ବ୍ରହ୍ମଚର୍ଯ୍ୟେ ଯତୀ ଭୋଗରେ ଜମ୍ପତୀ ।

====================
ଛନ୍ଦ: ମନ୍ତ୍ରିକା 06/35 212/221

ଭାରତେ ହିଂସାର ଛାଡ ଏ ବ୍ୟାପାର
କେ ତୁମେ ଏହାର ଭାଗ୍ୟ ଠେକାଦାର ।
====================
ଛନ୍ଦ: କରେଣୁ 06/3 212/222

ଖଣ୍ଡ କାଳେ କାଳେ ପ୍ରାଣସତ୍ତା ଜାଳେ
ପ୍ରେମ ଯାହା ଚିତ୍ତେ ଲେଖନୀ ସେ ଚାଳେ ।
====================
ଛନ୍ଦ: ଅତିକଳି 06/61 221/111

ନୀରେ ଶତଦଳ ବୃକ୍ଷେ ଫୁଲଫଳ
ଦୂରସ୍ଥ ଅଚଳ ପୃଷ୍ଠେ ଖଗ ଦଳ ।
====================
ଛନ୍ଦ: ବସୁମତି 06/29 221/112

ପୁଷ୍ପାଦି ଖଚିତା ଶୃଙ୍ଗାରିବନିତା
ତା ହସ୍ତରଚିତା ଏ ପ୍ରେମକବିତା ।

**भक्तार्तिकदनं संसिद्धिसदनम् ।**
**नौमीन्दुवदनं गोविन्दमधुना ॥**
====================
ଛନ୍ଦ: ହାଟକଶାଳି 06/45 221/121

ବନ୍ୟା ଜଳ ଆସି ଦେଲା ବିଲ ନାଶି
ଶେଷେ ହିମରାଶି ଆସେ ପୁଣି ଭାସି ।
====================
ଛନ୍ଦ: ତନୁମଧ୍ୟା 06/13 221/122

ତୁଚ୍ଛା ପ୍ରଭୁସତ୍ତା ଯେବେ ଗୁଣବତ୍ତା
ହାରେ ଅଧିକର୍ତ୍ତା ଦୁର୍ଭାଗ୍ୟ ଅବସ୍ଥା ।

**प्रीत्या प्रतिवेलं नानाविधखेलम् ।**
**सेवे गततन्द्रं वृन्दावनचन्द्रम् ॥**
====================
ଛନ୍ଦ: ଇନ୍ଦ୍ରା 06/53 221/211

ଆକାଶ ନିର୍ମଳ ବାରୀଶ ଉଚ୍ଛଳ
ହୃଦ୍ୟାଂଶୁ ଉଜ୍ଜଳ ଆଶା ହିଁ ସମ୍ବଳ ।

ଛନ୍ଦ: ଷ୍ଠାଳୀ 06/21 221/212

ଏ ଶୀତସଞ୍ଚାରେ କାହାକୁ କେ ସ୍ମରେ
କାହା ମନେ କିଏ ଆସେ ଥରେ ଥରେ ।
====================
ଛନ୍ଦ: ମନ୍ଥାନ 06/37 221/221
(ମନ୍ଥାନକ -vv)

କେତେ କି ଆଶାର ହେଲାଣି ସଞ୍ଚାର
କେତେର ହେଲାଣି କା ଦେଇ ସଂହାର ।
====================
ଛନ୍ଦ: ବଭ୍ରୂ 06/5 221/222

କାହାର ଆଦେଶେ ସଂସାର ବିନ୍ୟାସେ
କା ଅଶ୍ରୁ ସଂବେଶେ ଉର୍ବଙ୍ଗ ଔଦାସ୍ୟେ ।
====================
ଛନ୍ଦ: ପ୍ରୋଥା 06/57 222/111

କା ନେତ୍ରେ ସପନ କା ନେତ୍ରେ ରଦନ
କା ବାସେ ସମନ କା ବାସେ ଦମନ ।
====================
ଛନ୍ଦ: ଅନଘ (ନିଷ୍ଠା) 06/25 222/112

ଆନନ୍ଦେ ବସରେ ଅଧ୍ୟାୟେ ପଢିବା
ନାନା ଧର୍ମମତେ ଶିକ୍ଷା ଘେନିଯିବା ।୧
ବିଦ୍ଵା ସେହି ଯିଏ ଥାଏ ନିଃଶବଦେ
ତେଜେ ନା, ହଜିବା ଜାଣେ ନା ବିପଦେ ।୨
ବିଜ୍ଞାନେ ଗଣିତେ ସାହିତ୍ୟେ ଜଗତେ
ବିଦ୍ୟା ଯା ନିକଟେ ଚର୍ଚ୍ଚା ସେହି ଜିତେ ।୩
ବିଦ୍ୟା ତେଣୁ ପିଲେ ବେଗେ ଯାଅ ଶିଖି
ଖାତାପତ୍ର ପରେ ଗୂଢ ଧ୍ୟାନ ରଖି । ୪
ବାଣୀପୁତ୍ର
====================
ଛନ୍ଦ: ମଙ୍କୁର 06/41 222/121

ବିଶ୍ଵାସେ ଅନାଦି ଅଭ୍ୟାସେ ସମଧି
ଆଭାସେ ନିଶାଦି ଅଧ୍ୟାସେ ଭୟାଦି
*ଅଧ୍ୟାସ*= ***super-imposition*** *ଯଥା ରଜ୍ଜୁରେ ସର୍ପ; ଆଭାସ*= ***light,*** *ଆଲୋକ; ନିଶାଦି*= ***twiliht,*** *ସିନ୍ଦୂରା;*
====================
ଛନ୍ଦ: ତନ୍ତ୍ରୀ 06/9 222/122

ଯୁଦ୍ଧକ୍ଷେତ୍ର ପାଶେ ଶର୍ଯ୍ୟାତଳ୍ପବାସେ
ଭାଳେ ଭୀଷ୍ମ ଶେଷେ ହିଂସା କା ସକାଶେ ।
====================

ଛନ୍ଦ: କଂସରି 06/49 222/211

ଆକାଶେ ତାରକା ଉଦ୍ୟାନେ ମଲ୍ଲିକା
ଆବାସେ ବାଳିକା ତା ବକ୍ଷେ ମାଳିକା ।
====================
ଛନ୍ଦ: ଅବୋଢା 06/27 222/212

ସଂସୁପ୍ତା ମେଦିନୀ ଆକାଶେ ଚାନ୍ଦିନୀ
ବୃକ୍ଷାଗ୍ରେ ପକ୍ଷିଣୀ ମୌନେ ସମ୍ବାକ୍ଷିଣୀ ।
====================
ଛନ୍ଦ: ଆହୃତି 06/33 222/221

ଘୋଟନ୍ତେ ଅନ୍ଧାର ନିଶାର୍ଦ୍ଧେ ସର୍ବତ୍ର
କେ ବିଞ୍ଚେ ସର୍ବତ୍ର ଏ ପ୍ରେମ ପ୍ରପତ୍ର

====================
ଛନ୍ଦ: ବିଦ୍ୟୁଲ୍ଲେଖା 06/1 222/222
(ଶଂସ -vv)

ସମ୍ବାରେ ତା ଭାର୍ଯ୍ୟା ଭାଷେ ଖୋଲି ଦ୍ୱାର୍ଯ୍ୟା
ଶୂନ୍ୟା ତୁଲ୍ଲୀଶାଳା ପଦ୍ୟେ କେତେ ଚର୍ଯ୍ୟା ।

**गोगोपी गोपानां प्रेयांसं प्राणेशम् ।**
**विद्युल्लेखावस्त्रं वन्दे$हं गोविन्दम् ॥**
====================
07 ଅକ୍ଷର: ଉଷ୍ଣିକ୍ 128
====================

*ବାଣୀପୁତ୍ରକୃତାନି* _ଗିୟତ୍ରୀ_ ଛନ୍ଦସଃ
ଉଦାହହରଣାନି 202302182323

====================

## ଉଷ୍ଣିକ୍ ଛନ୍ଦାଂସି

ଛନ୍ଦ: ପ୍ରହାଣ 7/128 111/111+1

ଗରିବର ଚଳଣି
ହସ ହସ ବଦନ ତରୁତଳ ଶୟନ
ତୃଣତରୁପତର ଗରିବର ବସନ । 1
ପଶୁ ପରି ରହଣି ନ ଥିବ ବି କରଣି

ସରିତର ସଲିଳ		ଉଦରର ଭରଣି ।2
====

ଯଦୁପତି

ବହୁତ ଭଲ ଗୁଣ		ମନୁଜ ମନ ଶୁଣ ।
ରଖିଛ ପୁରଜନ		ସହିତ ଫୁଲବନ ॥ 1
ଗଢିଛ ତରୁବର		ରଣିତ ମଧୁକର ।
ମରୁ ସରିତ ଝର		ପଶୁ ସହିତ ନର ॥ 2
ଚରିତ ମଧୁ ଅତି		ଭରିତ ଯଦୁପତି ।
ମଣିଷ ଖଳ ମନ		ହରି କର ଦମନ ॥3 (ସ୍ୱରା.
ଲଲାଟେନ୍ଦୁ କବି 202303021616
====

ବନଝର

ଅଳସ ବନଝର		ଅଳପ ହରବର
ପୁରତ ବୁସ ଘନ		ସୁରତ ଫୁଲବନ ॥1॥
ବୁସ= କୁହୁଡି; ସୁରତ= ସୁକୁମାର;
ବହୁଛି ଡରି ଡରି		ଗମିବ ଜଳଧର
ସହୁଛି ମରି ମରି		ଲଭିବ ସହଚର ॥2॥
ମରୁତବଶକର		ଅଚର ଗୁରୁ ଗିରି
ବହୁତ ଭୟକର		ପଥର ବୁକୁ ଚିରି ॥3॥
ମରୁତବଶକର= ଯେ ବାୟୁକୁ ହରାଏ:
ଅଚର= ଅଟଳ, ନିଶ୍ଚଳ; ଗୁରୁ= ଶକ୍ତ, ଟାଣ;
ଲଲାଟେନ୍ଦୁ କବି		202310300830
===================

ଛନ୍ଦ: ମଧୁମତି		7/64 111/111+2

କର୍ବଟର ବନିତା

କରବଟ ବନିତା		ମଳୁଅଛି ବଳିତା
ଯିବ ଦିଅଁ ନିକଟେ		ସ୍ଫୁରୁଅଛି କବିତା । 1
ତନୁଦିହ ତରୁଣୀ		ଉଠଉଛି କହୁଣୀ
ପରଖୁଛି ଅଛି ନା		ଝରୁଅଛି ଲହୁଣୀ । 2
===================
ଛନ୍ଦ: କରହଂସ 7/96 111/112+1

ପୁଅକୁ ଦିଅ ଶୋଇ

ଧରିଛି ଜର ତାକୁ		ହରଷ କରିବାକୁ
ଦିଅ ତ ଟିକି ପାତ୍ର		ପଇଡଜଳ ଟାଖୁ । 1
ତଳପ କରି ଦେଇ		ପୁଅକୁ ଦିଅ ଶୋଇ
ରଖ ତଳପ ପାଖ		ଛବିବହିଟି ନେଇ । 2
ଲଲାଟେନ୍ଦୁ କବି		202303021616
===================
ଛନ୍ଦ: ବୃତୀ		7/32 111/112+2

### ଗରିବ ଶିଶୁ ଭାଳେ

ବନକୁସୁମ ମାଳେ		ସରିତଝର ତାଳେ
ଗରିବ ଶିଶୁ ଭାଳେ		ମିଳିବ ଭିକ ଥାଳେ । 1
ଉଦର ଥିବ ପୂରା		ଚଳିବି ପଥ ସାରା
ପୁର ବିପଣି ଯାକେ		ନ ଥିବ ଦିହ ଭାରା । 2

====================
**ଛନ୍ଦ: ସୁବାସ 7/112 111/121+1**
**(ନାମାନ୍ତର ସବାସନ) (ବାସକୀ, ସବାସନୀ -vv)**

### ଯଦୁପତିଅତି ବଡ ଭାରତ

ଅତି ବଡ ଭାରତ		ବହୁ ଜନ ଆରତ
ଅଗଣିତ ଧୀମତ		ବହୁତ ମିଳେ ମତ । 1
ଗଳି ଗଳି ପୂଜନ		ସବୁଦିନ ସାଧନ
ଭଳିକି ଭଳି ବ୍ରତ		ଭଳି ଭଳି ମନ୍ଥନ । 2
ସବୁ ଲଭି ଭାରତ		ମରମଟି ଆହତ
ମରୁଅଛି ତା ସୁତ		ବିଭବରୁ ବିଚ୍ୟୁତ । 3

====================
**ଛନ୍ଦ: ପୁରଟୀ 7/48 111/121+2**

### ମନଖୁସି ଖେଳିବା

ସ୍ୱଜନପଣେ ଧରା		ମିଳିତ ହୁଏ ପରା
ମିତ ଗଢିବା ହୁଏ		ଗପ ଛଳରେ ଛୁଏ । 1
ମନଖୁସି ଖେଳିବା		ଭଲ ଲଢି ଚାଲିବା
ବିଜୟ ପରାଜୟେ		ସ୍ଥିରମନରେ ଥିବା । 2

====================
**ଛନ୍ଦ: ଅନୁ 7/80 111/122+1**

### ହସୁଛି ଚନ୍ଦ୍ରମା

ସରିତ କହେ ମାଛ ! ଜଳଭିତରେ ନାଚ
କରି କରି ତୁ କ୍ଲାନ୍ତ		ନୁହଁ କହ କେମନ୍ତ ।1
ଜଳଜ କହେ ସିନ୍ଧୁ !		ହସୁଛି ନଭେ ଇନ୍ଦୁ
ନଜର କଲେ ମାଛ		ନ ଥକି କରେ ନାଚ । 2
ସିନ୍ଧୁ= ନଦୀ;

====================
**ଛନ୍ଦ: ସୁରି 7/16 111/122+2**

### ମୋ କାନ୍ତା

ବିରଜସ ଆକାଶେ		ଜଳଧର ଆଭାଷେ
ହଜିଲୁ କି ମୋ କାନ୍ତା ଗଗନଲତା, ତ୍ରାସେ । 1
ଦରଶନ ତା ଦେଲା		ଝଲସି ତଡିତ୍ମାଳା
କହୁଅଛି ଛାଡେ କେ ପତିକି ସତୀ ବାଳା । 2
ବିରଜସ୍= ଅରଜ, ନିର୍ମଳ; ଆଭାଷେ= କହେ;
ଗଗନଲତା= ବିଜୁଳି; ତଡିତ୍+ମାଳା= ବିଜୁଳି;

===================
ଛନ୍ଦ:     ବୀରବଟୁ 7/120   111/211+1

ଭ୍ରମରପଦ୍ମଫୁଲ

ସରସିଜେ ପ୍ରିୟକ          କହୁଛି ରଙ୍ଗମୁଖ
ଅତି ତୁ ଭାଗ୍ୟଧର          ଲଭୁ ସୁବାସ-ସୁଖ । 1
କୁହ କହେ ଭ୍ରମର          ତ୍ରୁଟିଭରା ଖବର;
ଲୁଚି ନିଏ ମଣିଷ,          ଅଶୁଭ ତା ନଜର । 2

ସରସିଜ= ପଦ୍ମ; ପ୍ରିୟକ= ଭ୍ରମର;

===================
ଛନ୍ଦ:     ସ୍ୱନକରୀ 7/56    111/211+2

ତରୁଣ ଆନମନେ

ଅରୁଣ ଆଗମନେ          ତରୁଣ ଆନମନେ
ଭ୍ରମୁଛି ଘୋର ବନେ  ମିଳିବ ବୋଲି ଜଣେ । 1
ହଜିଛି ତାର କିଏ          ମିଳୁ ତ ନାହିଁ ସିଏ
ହୃଦୟ ଥାଇ କହେ          ଦିନଟି ତାକୁ ଦିଏ ।  2

===================
ଛନ୍ଦ:     ମଣିମୁଖୀ 7/88    111/212+1

ଗହନ ରାତି ବାସି

ଗହନ ରାତି ବାସି          ସପନ ଦେଶୁ ଆସି
ମନ କହେ ତୁ ଖୋଜ ସ୍ୱଜନ ଭୀତି ନାଶି । 1
ହୃଦୟ ଗୋଟି ଭାଜି   ତରୁଣ ପାନ୍ଥ ସାଜି
ଚରିତ ଖୋଜି ଖୋଜି ମରିତ ରଙ୍ଗରାଜି ।  2

ଚରିତ= ଚାଲୁଛି; ମରିତ ରଙ୍ଗ= ମୃତ ପ୍ରେମ;

===================
ଛନ୍ଦ:     ମନୋଜ୍ଞା 7/24    111/212+2
(ସ୍ୱରକରା -vv)

ଭୋଗ୍ୟକାମୀ

ମରଣ ସଙ୍ଗ ଥାଏ          ମଣିଷ ଜାଣି ଥାଏ
ପୁଣି ବି ଚାଲି ଥାଏ          ଶକତି ଶେଷ ଯାଏ । 1
ନିରତ ଚାଲି ଦେହୀ          ଥକି ଗଲେ ବି ରାହୀ
ଚଳୁଛି ଭୋଗ୍ୟଲେହୀ     ସତ କି ଭାରବାହୀ । 2

===================
ଛନ୍ଦ:     ମୁରଜିକା 7/104   111/221+1

ମିଥ୍ୟା କଳି

ଜନମ ହେଲେ ନର          ପ୍ରତି କଥାରେ ଡର
ସବୁ ଲୁଚାଏ ସତ,          ମିଛ ବସାଏ ଘର । 1
ଘର ବି ଯାଏ ଚଳି          ତହିଁରୁ ମିଥ୍ୟା କଳି
କଳି ବି ଯେତେ ଭଳି ମଣିଷ ଯାଏ ଜଳି । 2

===================

ଛନ୍ଦ: ପରଭୃତା 7/40 111/221+2

ଖା ରେ ସଖୀ

ସ୍ତୁନକପୃଷ୍ଠେ ବକୀ କହୁଛି ଦେଖା ସଖୀ
ଶଲଭ ଦେହେ ଥିଲେଥିବୁ ସଦା ନର୍ତ୍ତକୀ । 1
ଛଗର କନ୍ୟା କହେ ବହୁତ ଦୁଃଖେ ରହେ,
ଶଲଭ ଖା ରେ ସଖୀ କଷଣ କେତେ ସହେ । 2

ସ୍ତୁନକ= ଛେଳି; ଶଲଭ= କୀଟ;

====================

ଛନ୍ଦ: କିଶଳୟ 7/72 111/222+1

ଯିବ କି ଗଙ୍ଗାତୀର

ଯିବ କି ଗଙ୍ଗାତୀର ପିଇବ ଅର୍ଣ୍ଣ ନୀର
ଦି ପଟ ତଟ୍ଟେ ତାର କରିବ ପୁଣ୍ୟାହାର । 1
ଦିବସ କର୍ମେ ଥାଇ ବିବଶ ରାତ୍ରେ ଶୋଇ
ପଡିବ ଗଙ୍ଗାତୀର ପଥର ପୃଷ୍ଠେ ଭାଇ । 2

====================

ଛନ୍ଦ: କିଶଳୟ 7/8 111/222+2

କୁପିତ ଅଶ୍ୱତ୍ଥାମା

ସମର ଶେଷ ହେଲା କୁପିତ ଅଶ୍ୱତ୍ଥାମା
ସୁପତ ପୁତ୍ରେ ନାଶେ ଘନ ହୁଅନ୍ତେ ରାମ୍ୟା । 1
କିରଣପାତେ ପ୍ରାତଃ ମୃତକ ପୁତ୍ରେ ଦେଖେ
ଦ୍ରୁପଦକନ୍ୟା ଯେବେ ସଲିଳଧାରା ଚକ୍ଷେ । 2

ଘନ= ଗାଢ; ସୁପ୍ତ= ନିଦ୍ରିତ; ରାମ୍ୟା= ରାତି;

====================

ଛନ୍ଦ: ବରଶଶୀ 7/124 112/111+1

ଟିକିପୁଷି

ସରିତେ ଖର ଜଳ ଗଗନେ ଖଗପଲ
ନଗରେ ନରକୁଳ ଡଗରେ ଫୁଲ ଫଳ । 1
କହିଲା ଟିକି ପୁଷି ମୁହିଁ ଆଜି କି ଖୁସି
ଜଗତେ ଚଉଦିଗ ଉଠିଲାଣି ବିହସି । 02

====================

ଛନ୍ଦ: ଯମନକ 7/60 112/111+2

(ଗୋଧି -vv

ଆବୁଝା ନରପତି

ଝଡିଲା ମୃତ ଫୁଲ ଅସନା ଝରଜଳ
ଅପଢା ନରଦଳ ସଢିଲା ଶତଦଳ । 1
ଶୁଖିଲା ଗଛ କତି ଥକିଲା ପଦଗତି
ହତବୁଦ୍ଧି ସଚିବ ଅବୁଝା ନରପତି । 2

====================

ଛନ୍ଦ: ସୁମାଳା 7/92 112/112+1

ନୀତିକଥା

ଖଜଳେ କର ଚାଷ		ଅନଳେ ରଖ ଧାସ
ପରବେ ଉପବାସ		ସରଜେ ଉପକାଶ । 1
ପିତରେ ଦିଅ ଅନ୍ନ		ତନୟେ ମତି ଦାନ
ଅଧନେ ଦିଅ ମାନ		ଧର ଦୁଷ୍ଟର କାନ । 2

ଖଜଳ= ବର୍ଷା; ଉପକାଶ= ଉଷାଲୋକ;
ମତି= ବୁଦ୍ଧି;

====================

ଛନ୍ଦ: କରଭିତ୍ 7/28 112/112+2

ଚିନ୍ତିତକୁନ୍ତୀ

ଅନଳେ ପଶି ମାଦ୍ରୀ ବନିଲା ବିହୟାତ୍ରୀ
ଚୁଡି କାଢିଛି କୁନ୍ତୀ		ସବୁ ଅର୍ଭକ-ଧାତ୍ରୀ । 1
ତିନିଟା ନିଜ ଜନ୍ମା		ଅଧିକା ଦୁଇ ଗୋଟା
କିସ ଖୋଇ କି ଭାବେ		କରି ପାରିବ ମୋଟା । 2

ବିହ= ଆକାଶ; ଅର୍ଭ(କ)= ଛୁଆ;

====================

ଛନ୍ଦ: ମୁହୁରା 7/108 112/121+1

ବଡମାଙ୍କ ପିଣ୍ଡବ

ମରି ପାଣ୍ଡୁ ଏକଇ		ମରିଲା ସିନା ଜନି
ସବୁ ବିଘ୍ନ ଦୂରିତ		ବଡମା କଲା ପୁଣି । 1
ଧରିଲା ମନେ ବଳ		କରି ଏକ କୌଶଳ
କହିଲା ବୁଝାଇଣ		ଚଳ ମାନି ଶୃଙ୍ଖଳ । 2
କୁନି ପାଣ୍ଡୁପୁତ୍ରକ		ଯୁଧି ଭୀମ ଅର୍ଜୁନ
ସହ ନକ୍ସୁ - ଏ ପରି		ରଖିଲା ଛୁଆଧନ । 3

====================

ଛନ୍ଦ: କଠୋଦ୍ଧତା 7/44 112/121+2

ସ

ନର ସେହି ଝିଲ୍ଲିକା

ପରିତଃ ବିଷାନନା		ପଛରେ ଲଳନ୍ତିକା
ଉପରେ ବିଡାଳିକା		ଯିବ କାହିଁ ଝିଲ୍ଲିକା । 1
ଜଗତେ ସଦା ଜନେ ଅତି ଆପଦେ ତଥା
ଅତି ସାବଧାନରେ		ଚଳ ମାନି ମୋ କଥା । 2

ବିଷାନନା= ସର୍ପିଣୀ; ଲଳନ୍ତିକା= ଝିଟିପିଟି, ଏଣ୍ଡୁଅ;
ବିଡାଳିକା= ପୁଷି; ଝିଲ୍ଲିକା= ଝିଣ୍ଟିକା; ତଥା=
ସେହି ପରି;

====================

ଛନ୍ଦ: ଅଳାଳାପୀ 7/76 112/122+1

ଟିଭିରେ ପୁଳେ ଭାଟ

ଟିଭିରେ ପୁଳେ ଭାଟ କରିବେ ମିଛେ ପାଠ

ନ ମିଳେ କିଏ ଅନ୍ୟ ନରପାଳକେ ଗଣ୍ୟ । 1
ବନରେ ଥିବା ଜନ୍ତୁ ଭିତରେ ରଜା କିନ୍ତୁ
ବଲୁଆ ଇଏ ବୃଦ୍ଧ ହଉ ସେ ସଦା କ୍ରୁଦ୍ଧ । 2
====================
ଛନ୍ଦ: ରସଧାରୀ 7/12 112/122+2

## ମୂର୍ଖ ଯୋଦ୍ଧା

ସମରେ ମଲେ ସର୍ବେଭଟ ସାରଥୀ ଯୋଦ୍ଧା
ନୃପ ସାଜିବା ଆଶେ ଲଢି ଚାଲିଲେ ଭୋକ୍ତା ।
ମରିବାକୁ ବୋକାଏ ବନିଲେ ମହା ଯୋଦ୍ଧା
ଭରସା ବିନା ମର୍ତ୍ତ୍ୟେ ବିଧବା ଛୁଆ ବୃଦ୍ଧା ।
====================
ଛନ୍ଦ: ଲୋଳତନୁ 7/116 112/211+1

## କିସ ଚାହେଁ ମଣିଷ

ଗଛଟା ହେଉ ବଡ ଫୁଲ କେ ଦେଖି ଅଛ
କରମେ ଲାଗିବ କି ବଢିଲା ସେହି ଗଛ ।
ବଡ ହେଇ ପ୍ରଚୁର କି ହିତେ ତା ବିଟପ,
ଭରି ଦେଲେ ମଣିଷ କହି ଚାଲେ ଅଳପ ।
====================
ଛନ୍ଦ: ଅଧିକାରୀ 7/52 112/211+2

## ଧର ଧନ୍ଵୀ ରୂପଟେ

ନଉ ଟଙ୍କା ଟିକସେ ରହୁ ରାଜା ହରଷେ
ସୁବିଧା ଦେଖି ଭଗା ଅଛି ଏବେ ବରଷେ ।
ତଡି ଏ ନିର୍ବୁଧିଆ ଧରି ନୂଆ ଭୂପଟେ
କରି ଦେଖା କିମିଆ, ନିଜ ଧନ୍ଵୀ ରୂପଟେ ।
====================
ଛନ୍ଦ: ପ୍ରୋଞ୍ଛିତା 7/84 112/212+1

## ଗତାକ୍ଷ

ତୁମ ହାତେ ପ୍ରଭୁତ୍ୱ, ନିକଟେ ମୋର ସତ୍ୟ,
ଅଛ ଯେବେ ଗତାକ୍ଷ ରହ ଏବେ କୃତାର୍ଥ ।
ସମୟେ ନେତ୍ର ଖୋଲି ତୁମ ମୂର୍ଖାନ୍ଧ ପଙ୍କ୍ତି
ଯଦି ଦେଖନ୍ତି ସତ୍ୟ ତୁମ ଭାଗ୍ୟେ ବିପତ୍ତି ।
====================
ଛନ୍ଦ: ହଂସମାଳା 7/20 112/212+2

## ଜ୍ୟୋତିରେଖା

ସହସା ଜ୍ୟୋତି ରେଖା କହିଲା ଜାଗ ଏବେ
ସରିଲା ସ୍ୱପ୍ନ ଦେଖା ଚଳିବା ଅର୍ଥଲାଭେ । 1
ରହିଲେ ଜୀବନେ ନା ମିଶିବା ପୁଣ୍ୟ କାମେ
ଅଳସେ କେହି କେବେ ସୁଖସଂଜ୍ଞା ନ ଜାଣେ । 2
====================

ଛନ୍ଦ: କାହୀ 7/100 112/221+1

ପ୍ରତିହିଂସାର ଫଳ

ଖଲୁଆ ଦୁର୍ଯ୍ୟୋଧନ  ବଲୁଆ ଦୁଃଶାସନ
ଲଢୁଆ ରାଧାଧନ  ସମରେ ମୌନାନନ । 1
ଅପରେ ଶ୍ରୀ ଅର୍ଜୁନ  ସବୁ କୁନ୍ତୀନନ୍ଦନ
ବିଜୟୀ ହେଲେ ସତ, ହତ ଯୁଦ୍ଧେ ଯେସନ । 2

ରାଧାର ଧନ= କର୍ଣ୍ଣ; ମୌନାନନ= ମୁହଁ ବନ୍ଦ;

ଲଲାଟେନ୍ଦୁ କବି 202302201454

===================

ଛନ୍ଦ: ମାୟାବିନୀ 0କ7/36 112/221+2

ଅନ୍ନଦା

ପୁଣି କେବେ ଦେଖିବା  ବରଷା ହେଲା ପରେ
ଜମିରେ କେତେ ଦବା  ଯୁରିଆ କେ ମାପରେ । 1
ଭଲ ହେଲେ କ୍ଷେତଟା  ଧନ ଦେବେ ଅନ୍ନଦା
ନିତି ଲକ୍ଷ୍ମୀ ପୂଜିବା  ଶୁଭ ଦେବେ ସେ ସଦା ।2

===================

ଛନ୍ଦ: ଗୃହିଣୀ 7/68 112/222+1

ଆହାର

ଘର ପାଖେ ଦୋକାନ  କିଣିବା ସାଦା ପାନ
ବୁଲି ଯେବେ କେ ଆସ  ଥିବ ହେଲେ ମଧ୍ୟାହ୍ନ ।1
ଥିବ ଯାହା ଆହାର  କରି ବା ସଙ୍ଗେ ମାତ୍ର
ନ ମିଳେ ଯା ତା ନେଇ  କର ନା ହାହାକାର ।2

===================

ଛନ୍ଦ: ଶମ୍ବୂକ 7/4 112/222+2

ପୁରୁଣାଖଣ୍ଡାଧାରୀ

ଅଇଲେ କେତେ ବେଳେ  ବସିଲେ ଶାଖା ମେଳେ
କହିଲେ କେ ଜାଣନ୍ତା ଖୁସି ବାର୍ତ୍ତା ଭାଷନ୍ତା ।1
ଗପି କେ ଅତ୍ୟାନନ୍ଦେପରଷନ୍ତା ମଣ୍ଡାଟେ
ନିକଟେ ସେ ଦେଖନ୍ତା  ପୁରୁଣା ଖଣ୍ଡା ଗୋଟେ ।2

===================
===================
===================
===================

ଛନ୍ଦ: କୁରଦୀ 07/126 121/111+1

ଛପରଘର

ତୁମେ ଥିବ ଘରଠି  ମପା ହବ ପୁରଟି
ଦିନେ ମିଳିବ ଛୁଟି  ତିଆରିବି ମୁଁ ରୁଟି । 1
କୁଟା ଛପର ଘର  ବୁଦା ଗଛ କୁଦର
ମଜା ବହୁତ ଦବ  ଗଲେ କି ଅଭିନବ । 2

====================
ଛନ୍ଦ: ସ୍ନିଦା 0କ7/62 121/111+2

ପ୍ରିୟା ରୁଷିଛି

ସକାଳୁ ଗଛ ପରେ କୁଆ କହିଛି ଥରେ
ପ୍ରିୟା ଅତି ଚତୁରା ମିଛେ ରୁଷିଛି ପରା । 1
ଅଣାଇ ଦିଅ ଫିତା କୁଟାଇ ଦିଅ ଚିତା
ସଜାଇ ଦିଅ ମଥା ସିଏ କହିବ କଥା । 2
====================
ଛନ୍ଦ: ବିରୋହି 7/94 121/112+1

ନ କର ଗାଳି

ଜମା ନ କର ଗାଳି ଟିକେ ବିଛଉ ଜାଲ
ସିଏ ତୁମର ବାଳି ଧରା ଦିଅ ତୁ ଚାଲ । 1
ଟିକେ ହଉ ଫୁଲେଇ ସୁନା ଝିଅ ଦୁଲେଇ
ମଜା ମିଳିବ ଭାଇ ମିଛେ ଦିଅ ଡରାଇ । 2
====================
ଛନ୍ଦ: କୁମାରଲଳିତା 7/30 121/112+2

କିଆଁ ନୟନବାରୀ

ଖରା ତପନ ଧାସେ ଭିଜା ସବୁଜ ଘାସେ
କିଆଁ ବସିଛ ପାଶେ ବଡା ମନ ଉଦାସେ ।1
କିଏ କହିଛି ଭାରୀ କଥା କହ ବିଚାରୀ
କିଆଁ ଗଳୁଛି ନାରୀ ଗଳେ ନୟନବାରୀ ।2
====================
ଛନ୍ଦ: ଉପୋଦରୀ 7/110 121/121+1

ଇଏ କନିଆଁ ଘର

ଥିଲେ କରମେ ଥିବ କିଏ ଯିବ ଆସିବ
ପିଲା ମିଳିଲେ ଶିବ ଯିଏ ଭଲ ପାଇବ ।1
ଦିନେ ମିଳିବେ ଭଲ ସୁନା ତୁ ଘରେ ଚଳ,
ଜମା ନ ଗଡା ଲୁହ ଟିକେ ଖୁସିରେ ରହ ।2
====================
ଛନ୍ଦ: ବହିର୍ବଳି 7/46 121/121+2

ନ କାନ୍ଦ ସୁନାପରୀ

ଥରାଇ ବିବାଭରୀ ନ କାନ୍ଦ ସୁନା ପରୀ
ବିଷାଦିତ ତଞ୍ଚରୀ ଲତା ଫୁଲ ମଞ୍ଜରୀ । 1
ବନେ ଖଗ ପକ୍ଷିଣୀ ଜଳେ ଝଷ ରଙ୍ଗିଣୀ
ବିନିଦ୍ର କଳାପିନୀ କି ଜାଣୁ ତୁ ଭାମିନୀ । 2
====================

ଛନ୍ଦ: ରଚା 7/78 121/122+1

ଅସୀମ ଅଣାକାର ଅଦୃଶ୍ୟ ଦିଶା ପାର
ଅଭେଦ୍ୟ ଭବାଧାର ଅସାଧ ସଦାଚାର ।
ଅଜେୟ ଜନାଧାର ଅଲଷ୍ଟ ଗଳାହାର
ଜଣେ ଅଛି ସେ ମୋର ସମଗ୍ର ସମାହାର ।
ସମାହାର= **totality**, ସମ୍ପୂର୍ଣ୍ଣତା;

====================

ଛନ୍ଦ: ପଦ୍ୟା 7/14 121/122+2

କବିତା: ଭରା ବରଷା କାଳେ
**121/122+2**
ଧରା କରକାପାତେ ଭରା ସଲିଳ ସ୍ରୋତେ
ଝରା ଫୁଲଟା ମାଥେ ଧରେ ଦରଦୀ ହାତେ ।1
ଜନେ ଚଳିଲେ କେଣେ କ୍ଷଣେ ଅଶୁଭା ଯେହ୍ନେ
କିଏ ବିରହୀ ଗାନେ ମରେ ମଦିରା ପାନେ ।2
**L. Kabi 202302222308**

====================

ଛନ୍ଦ: ଶାରଦୀ (ସ୍ବରଧି) 7/118 121/211+1

ସୁବର୍ଣ୍ଣଭୂ ନଗର ରଜାବୁଢା ନବର
ସସାଗରା ନଜର ଖରା ତରା ସକର । 2
ନିଅଣ୍ଟ କିନ୍ତୁ କର ରଜା ଅତି ପ୍ରବର
ରଜାକୁ ଶାନ୍ତ କର ବଢାଇ ଚାଲ କର । 2
ସୁବର୍ଣ୍ଣଭୂ= ସୁନାର ଦେଶ; ସସାଗରା=
ପୃଥିବୀ ସରି ସମୁଦ୍ର ଆସିବା ଯାଏ; ଖରା
ତରା ସକର= ଖରାକୁ ଗଲେ କି ତରା
ଦେଖିଲେ ବି ଶୁଙ୍କ ଲାଗିବ; ପ୍ରବର= ଗୁରୁଜନ;

====================

ଛନ୍ଦ: ମହୋଧିକା 7/54 121/211+2

**(ସ୍ବ.ଅ.)**
ଖରାପ ଭାଗ୍ୟ ବଳେ ରଜାର ରାଜ୍ୟ ଗଲେ
ରଜା ପ୍ରହାର ଫଳେ ପଳାଦ ଜାଣ ମଲେ । 1
ଜନେ ଅଭକ୍ତି ବଢେ ନରେଶ ଶକ୍ତି ଝଡେ
ରଜାର ଭେକ ଗଲେ ହତାଶ ମେଷ ପଲେ ।2
ପଳାଦ= ମାଂସଖାଦକ;

====================

ଛନ୍ଦ: ପ୍ରତର୍ଦ୍ଦୀ 7/86 121/212+1

ଇତିହାସ
ଅତୀତ ଯେ ପଢନ୍ତି କଥା ମନେ ରଖନ୍ତି
ମନେ ରହେ ସମସ୍ତ ବ୍ୟଥା ମିଳେ ପ୍ରଭୂତ । 1
ତଥାପି ଏ ସମାଜ କହେ ଅତୀତ ହେଜ
ପଢନ୍ତି ଲୋକ ତାକୁ ବ୍ୟଳୀକ ପାଇବାକୁ । 2
ଲ. କବି **202302252121**

====================

ଛନ୍ଦ: ପୁରୋହିତା 7/22 121/212+2

ନିଶୀଥ ହେବ ବାଳୀ  ଦିଗନ୍ତ ହେବ କାଳୀ

ଅଦୃଶ୍ଯ ହେବ ଚାଳୀ  ତୁ ଫେରି ଯା ମରାଳୀ ॥1

ଧରା ତୁ ମୋର ହାତେ  ନ ଦେବୁ କେଉଁ ଭାବେ

ଦିନେ ତ ମୋର ସାଥେ  ତୁ ଆସିବୁ ସ୍ୱଭାବେ ॥ 2

====================

ଛନ୍ଦ: ଖର୍ପରୀ 7102 121221+1

କି ଭାବନେ ଆସିଲ  ମିଠା ମିଠା ଭାଷିଲ

ବରୂଥ ଯାଏ ସରି  ସତେ କାଢେ ଥିଲ ॥ 1

ସମୁଦ୍ର ବାରୀ ସମ  ବିରାଜିଲା ବିଭ୍ରମ

ଅବର୍ଣ୍ଣ୍ୟ ସେ ଦୁର୍ଦ୍ଦିନ  ବିନାଶିଲା ସଂଯମ ॥ 2

====================

ଛନ୍ଦ: କୁଠାରିକା0 7/XX 121/221+2

ଫଳନ୍ତି ଶାଖା ଶିରେ  ସୁନାର ପକ୍ଷୀଟିଏ

ନ ଚାଖି ଗୋଟେ କଳେ  ସୁଖେ କି ମୌନେ ସିଏ ।1

ଦ୍ୱିତୀୟ ପକ୍ଷୀ ତଳେ  ସଦା ସୁଖେ ଆହରେ

ଦିନେ କି ଆଶେ କହେ  ନ ଖାଇ ଦେଖେ ଥରେ ।2

ନ ଜାଣି ହେଲା ଜମା ନ ଖାଇ ଶୂନ୍ୟୋଦରେ

ଶରୀର ସାରା କିଆଁ  ସୁନାର ରଙ୍ଗେ ଭରେ । 3

====================

ଛନ୍ଦ: ଶ୍ରୋଣୀ 7/70 121/222+1

ଅମା କଳା ଅନ୍ଧାର  ମିଛେ ଛଟାଭା ଗାର ।

ନୃଲୋକ ପାରାବାର  କିଏ ନୁହେଁ କାହାର ॥ 1

ଝଳେ ଦ୍ରବନ୍ତୀ ତୀର  ସ୍ଥଳେ ଶିଳାରେ ନୀର ।

ଖରେ ଚଳେ ସେ ମୀର  ତରନ୍ତ ଥାଏ ଧୀର ॥ 2

====================

ଛନ୍ଦ: ସୁମୈହିତା 7/6 121/222+2

ସରୌଘ ସାରା ଦେହେ  ଗତାୟୁ ମାତୃସ୍ନେହେ

ଅଧୀର ଚିତ୍ତେ ଭାଳେନିରେଖି ଅମ୍ଭୋବାହେ ॥1

କହେ ବୁଝା ମୋ ମାତା  ଇଏ ତ ଶେଷାବସ୍ଥା

କି ପାପ ଯୋଗେ ଏତେ  କଠୋର ହେଲା ଧାତା ॥2

====================

ଛନ୍ଦ: ଅହତୀ 7/122 122/111+1

ବନସ୍ତେ ଡରି ଡରି  ଦି ହାତେ ଫୁଲ ଧରି

କି ଆଶେ ହରବର  ଜଳେ ଚାଳିଲ ତରି ॥ 1

କିଏ ପ୍ରେମିକ ତବ  କିଏ ସେ ଫୁଲ ନବ

କିଏ ସେ ଭାଗ୍ୟଧର  କି ତାହା ଅନୁଭବ ॥ 2

====================
ଛନ୍ଦ: ଚିରରୁଚି 7/58 122/111+2

ତଟୀକ୍ଷେ ଦ୍ୟୁଗପରୀ ଚଳାଏ ଟିକି ତରୀ
ନିନେଖେ ଝରଜଳେ ଛଳେ ଚାହିଁ ଶଫରୀ ॥1
ପରୀ ଶ୍ରୀମୁଖ ହସେ ଫୁଟନ୍ତା ଫୁଲ ଖସେ
କହେ ଶଙ୍କଳତନୂ ମିଳନ୍ତା ଥରକ ସେ॥ 2
====================
ଛନ୍ଦ: ପରଭାନୁ 0 7/90 122/112+1

ଅପାୟେ ନିରୁପାୟ ଅନର୍ଥେ ଅସହାୟ
ନୁହେଁ ଯେ ସ୍ଥିରଚିତ୍ତ ଜିଣେ ସେ ସମୁଦାୟ ॥1
ତୁ ଯୋଦ୍ଧା ଯଦି ହେବୁ ସୁଯୋଗେ ଯଶ ନେବୁ
ଅତୀଚ୍ଛେ ରଣ ଛାଡି ହରା ନା ବଳ ବାବୁ ॥2
==
କରାଗ୍ରେ ଧନବିତ୍ତ ବିମଧ୍ୟେ ସ୍ଥିରତତ୍ତ୍ୱ
ସୁମୂଳେ ଚିରସତ୍ତ୍ୱ ସ୍ୱହସ୍ତେ ରଖ ଚିତ୍ତ ॥1
ସ୍ୱପାଦେ ଗତିଶୀଳ ହୁଅ ବ୍ରାହ୍ମଣ ବାଳ
ତୁ ଧୈର୍ଯ୍ୟେ ଜିତ ଯାକୁ ନ ପାରେ କରବାଳ ॥2
====================
ଛନ୍ଦ: ମହନୀୟା 7/26 122/112+2

ସୁବିଦ୍ୟା କର ଶିକ୍ଷା ସୁଯୋଗ୍ୟଙ୍କଠୁ ଦୀକ୍ଷା
ବିପକ୍ଷେ ଦଳ ଯୁଦ୍ଧେ ଦରିଦ୍ରେ କର ରକ୍ଷା ॥1
ସ୍ୱଦେଶେ କର ମୈତ୍ରୀ ବିଦେଶେ କର ମୈତ୍ରୀ
ସଦା ହର୍ଷିତ ଚିତ୍ତେ ତୁ ଶିକ୍ଷା-ଅନୁବର୍ତ୍ତୀ ॥2
====================
ଛନ୍ଦ: ଉପୋହା 7/106 122/121+1

କିଏ ସେ କହେ ନଭ-ଶରୀରେ କଣା ଥିବ
ନ ହେଲେ ଧରା ତଳ ପ୍ରବର୍ଷା କି ଆସିବ ॥1
ଯିବା ଖୋଜି ସେ ବିଳ ପୁରା ରୋକିବା ପୟ
ନ ହେଲେ ଧରାତଳ ଜଳେ ଭାସିବା ଥୟ ॥2
====================
ଛନ୍ଦ: ମହୋଦ୍ଧତା 0 7/42 122/121+2

ଶତାଙ୍ଗେ ମହୋଦ୍ଧତା ପ୍ରମାଦେ ଉପସ୍ଥିତା
ନ ଜାଣେ ମିଠା କଥା କହେ ସେ ପତିବ୍ରତା ॥ 1
ବିମତ୍ତା ସମା ନରେ ଲଢାଏ ପରସ୍ୱରେ
ଅସୂୟା ରସାୟନେ ଗଧାଏ ସୁଧୀବରେ ॥2
====================

ଛନ୍ଦ: ନର୍ହୀ 7/74 122/122+1

ଅଧର୍ମୀ କୁଳାଙ୍ଗାର ପରାନ୍ନେ ଅହଂକାର
ଅକର୍ମା ଦୁରାଚାର ଧରିତ୍ରୀ ପରେ ଭାର ll1
ନ ଥାଏ ତିଳେ ଶୀଳ ସ୍ୱବଂଶେ ନିଜେ କୀଳ
ଥରେ ହେଁ ଜମା ତାଙ୍କୁ ନ ଦେବା କଥା ଚାଳ ll2

====================

ଛନ୍ଦ: ଅଭୀକ 7/10 122/122+2

କରାଳୀ ଅମା ରାତ୍ରୀ ସମସ୍ତେ ଥକା ଯାତ୍ରୀ
ଲଦା ପୃଷ୍ଠରେ ଭାରା ନିରେଖେ ମହାଧାତ୍ରୀ ll1
ଅବିଶ୍ରାନ୍ତ ସର୍ବାଗ୍ରେ ଯିଏ ହାରି ଜାଣେନା
ସମସ୍ତେ ହିଁ ପଶ୍ଚାତେ ସମୀରେ ଉଡେ ବାନା ll2

====================

ଛନ୍ଦ: ଭୂରିବସୁ 7/114 122/211+1

ପଥପ୍ରାନ୍ତେ କୁସୁମ ରହେ ଆନନ୍ଦ ମନ
ବତାସେ ନଷ୍ଟ ବନ ଅରିଷ୍ଟେ କ୍ଷୁଦ୍ର ତୃଣ ll1
ତୁମେ ସେ ଭବ ରଖି ନମ୍ରତ୍ୱେ ଥାଅ ସଖି!
ଯିଏ ଦର୍ପୀ ଚଳିବ ନ ଯା କେବେ ତୁ ଥକି ll2

====================

ଛନ୍ଦ: କେଶବତୀ7/50 122/211+2

ଅଧେ କୀଟାଣୁ ଜଡା ଅଧେ ଭଙ୍ଗା ଖଦଡା
ଅଧେ ବସ୍ତାରୁ ଝଡା ଅରନ୍ଧା ଭୋଜ୍ୟ ବଢା ll1
ସଦା ଗାଏ ମିଡିଆ ମହା ଦାତା ମଣିମା
ବୁଝଏ ଆଇଡିଆ ମହୀଭର୍ତ୍ତା ମହିମା ll 2

====================

ଛନ୍ଦ: ମୟୂରୀ 7/82 122/212+1

ମୟୂରୀ ଗୋ କି ଲାଗି ପୟୋଦେ ଥାଅ ଜାଗି l
ଝରେ ଯେବେ ବିହଙ୍ଗଚଳ ପ୍ରେମାଶ୍ରୁ ମାଗି ll1
ତୁମ ପ୍ରେମୀ ମୟୂର ସିଏ ପୂରା ବିଚିତ୍ର
ମୁଁ ଜାଣେ ତା ଚରିତ୍ର ପର ପ୍ରେମେ ବିନିଦ୍ର ll2

====================

ଛନ୍ଦ: ବୟସ୍ୟ 7/18 122/212+2

କିଏ ଗୋ ଏ କୁଆରେ ଛିଡା ଖୋଲା ଦୁଆରେ
ବିଭୀତା ଆସ ପାଶେ ଫୁଟା ତୋ ହାସ୍ୟ ଆସ୍ୟେ ll1
ଅଧୀରା, ଏ ଅବସ୍ଥା କିଏ ଦେଲା ଅଦତ୍ତା !
ତୁମେ ମୋର ପ୍ରତିତ୍ତେ ପ୍ରିୟା ମୋ ପ୍ରାଣସତ୍ତା ll2

====================

ଛନ୍ଦ: ପଦ୍ମରୀ 7/98 122/221+1
ତୁମେ ମୋ ପ୍ରାଣପ୍ରିୟ
ତୁମେ ମୋ ନୀଳାଚଳ ତୁମେ ମୋ ପୂଜାଫୁଲ
ତୁମେ ମୋ କର୍ମସ୍ଥଳ ଦି ଧାରେ ନୀଳୋତ୍ପଳ ॥1
ତୁମେ ମୋ ତାରା ପଥ ତୁମେ ମୋ ଯାତ୍ରାରଥ
ତୁମେ ମୋ ଚର୍ଚ୍ଚାସ୍ଥଳ ସଭାରେ କଣ୍ଠାଗ୍ରତ ॥ 2
ଲଲାଟେନ୍ଦୁ କବି 20230302
====================
ଛନ୍ଦ: ଉପିକ 7/34 122/221+2

ତୁମେ ଆଗୋ ସୁନ୍ଦରୀ ଲତାବୃନ୍ତେ ମଞ୍ଜରୀ
ତୁମେ ମୋ ଦିବ୍ୟା ପରୀ କହେ ଶ୍ୟାମା ଶର୍ବରୀ । ॥ 1
ଧରା ଦେଲେ ହସ୍ତକେ ଧଳା ଫୁଲେ ମସ୍ତକେ
ମଥାରେ ଟୀକାଟିଏ ମୁଁ ଦେଲେ ନେବ ପ୍ରିୟେ ॥ 2
====================
ଛନ୍ଦ: କଂସାସାରି7/66 122/222+1

କିଏ କେବେ କା ଲାଗି ରହେ ଯାମୀରା ଜାଗି ।
କିଏ କା ଆଶା ବାନ୍ଧି ସମୂଳେ ଯାଏ ଭାଙ୍ଗି ॥ 1
ନିରେଖେ ଏ ସଂସାର ନୃନେତ୍ରେ କେତେ କାର
ଝରେ ସ୍ରୋତସ୍ତା ମାତ୍ର ଯୁଗାନ୍ତବ୍ୟାପୀ ଧାର ॥ 2
====================
ଛନ୍ଦ: ପ୍ରହାଣ 7/2 122/222+2

କିଏ ସେ କେତେ ବେଳେ ଘରେ ବା ସାଥୀମେଳେ
ବିଚାରେ ଶ୍ରୀୟା ଦେବୀ ପ୍ରସନ୍ନା ହେବେ କାଳେ ॥ 1
ଉଦାସେ କେବେ କେବେ କିଏ ଏକାକୀ ଥାଏ
ତମିସ୍ରା କୋଳେ କେବେ ଅନିଦ୍ରା ରାତ୍ରୀ ପାହେ ॥ 2
====================
====================
211/111+1 to 222/222+2
====================
====================
ଛନ୍ଦ: କୋଶୀ 07/127 211/111+1

ଶାନ୍ତନୁର ତନୟ ଶୀଘ୍ର ମୃତ ଉଭୟ ।
ବ୍ୟାସ ମୁନି ଶକତି ଗର୍ଭ ତହୁଁ ଭରତି ॥ 1
ବଂଶରୁ ଦୁଇ ଜଣ ଦାସ ଝିଅଟି ପୁଣ
ପେଟ ଫୁଲି ଫୁଲିକି ଜାତ ସୁତ ତିନିଟି ॥ 2
ଅନ୍ଧ ଧୃତ ବଡଟି ପାଣ୍ଡୁ ନିବଳ ଅତି
ଏସ୍.ସି. ପୁଅ ବିଦୁର କାଳୁ ବଡ ଚତୁର ॥ 3
====================

ଛନ୍ଦ: ଉଳପା 7/63 211/111+2

ଦେଖି ତୁମକୁ ଥରେ ଜାଗିଅଛି ମନରେ
ଆସିବ ଛଣ ଘରେ କାଇଁଚ ବଣ ପରେ ll 1
ସାଜି ବୁଜି ଅଭିକା ମୋ ବନର ଲତିକା
ବାସ ଛୁଟିବ ହସେ ପୀରତି ପରବଶେ ll 2
====================

ଛନ୍ଦ: ବରଜାପୀ 7/95 211/112+1

ଭିରତ ଜନନୀର ଆସ ଶୁଣିବ ଗୀତ
ସଞ୍ଜ ପଡୁଛି ଲୋଟି ଆଗକୁ ଅଛି ଶୀତ ll 1
ଗୀତ ଛୁଟିବ ଆଜି ଗାୟକ ବସିଲେଣି
ମଞ୍ଚ ଉପର ଦେଖ ଶିକ୍ଷକ ପଶିଲେଣି ll 2
====================

ଛନ୍ଦ: ରୁଚିର 7/31 211/112+2

1-
ଏ ମନ ଅତି ଭାରେ ଆଦିମ ଅଭିସାରେ
ଆଦ୍ୟ ମିଳନ ଆଶା ପୂରିବ ଅଭିଚାରେ ll 1
ଖୋଜି ବରଷ ସାରା ଆଜି ନୟନତିରା
ଆସିବ ମୃଦୁ ହାସେ ଭାଷିବ ମଧୁ ଭାଷେ ll 2

2-
ଈଶ୍ୱର ତୁମ ନେତ୍ରେ ନାହିଁ ତିଳକ ନିଦ୍ରା
କେବଳ ରଚି ଲୀଳା ସୃଷ୍ଟି କରୁଛ ଚିତ୍ରା ll 1
ଏ ପରି ବିଧି କିମ୍ପାଁ ଖଞ୍ଜିଛ ଚଉପାଶେ
କେ ଉଦର ନିମନ୍ତେ ଆନକୁ ନିତି ନାଶେ ll 2
====================

ଛନ୍ଦ: ଜାସରୀ 7/111 211/121+1

ଏଇ ଘର ମାଟିର ସେଇ ଘର ଝାଟିର
ଏ ବିଷମତା ଗିର ଏହି ମଦଭାଟିର ll 1
ଆଜି ଯିବ ସେ ଘର କେହି ବି ନୁହେଁ ପର
ଜାଣ ସତ ଭାସ୍ୱର ସର୍ବଜନ ଆମର ll 2
====================

ଛନ୍ଦ: ଧୁନୀ (ଉନ୍ଦରୀ) 7/47 211/121+2

ରାମ ଭରତେ କହେ ମୋ ହୃଦୟ ଯା ଦହେ
ତୋର ଜନନୀ କଥା କେ ଅଛି ଯିଏ ସହେ ll 1
ମୋ କଠୁଉ ତୋ ଜିମା ଦେଲି ରଖି ଥା ଭଲେ
ଦେବୁ ତୁ ବଢାଇକା ଫେରି ବନୁ ଆସିଲେ ll 2
====================

